# ହିତୋକ୍ତି ମୁକ୍ତାବଳୀ



# A Rosary of Sayings



Dr. B. C. Patnaik
ଡକ୍ଟର ଭିକାରୀଚରଣ ପଟ୍ଟନାୟକ

# ହିତୋକ୍ତି ମୁକ୍ତାବଳୀ

## A ROSARY OF SAYINGS



ଡକ୍ଟର ଭିକାରୀଚରଣ ପଟ୍ଟନାୟକ



MUKUR PRESS
CUTTACK-2
1958

# ସୂଚିପତ୍ର

# ଭୂମିକା

ପ୍ରଥମେ ମୋହର କ୍ଷୁଦ୍ର କର୍ମ କୁଟୀରରେ ଓଡ଼ିଆ ଓ ଇଂରାଜୀର ଉକ୍ତି ଗୋଟିଏ ଗୋଟିଏ ଲେଖି ଟାଙ୍ଗି ଦେଇଥିଲି । ଦେଖିଲି ତାହା ଅନେକଙ୍କର ଦୃଷ୍ଟି ଆକର୍ଷଣ କଲା । କେତେକ ବର୍ଷ ତଳେ ପଶ୍ଚିମ ବଙ୍ଗର ମନୀଷୀ ଶ୍ରୀ ସୁନୀତି କୁମାର ଚାଟାର୍ଜୀ ମହାଶୟ ଆସି ଗୋଟିଏ ଦରିଦ୍ରା ବୃଦ୍ଧାର ପ୍ରତିମୂର୍ତ୍ତି ହସ୍ତରେ ଖଣ୍ଡିଏ କାଗଜ ପଟାରେ ଲେଖା ଥିବା ଇଂରାଜୀ ଉକ୍ତିଟି ବାରମ୍ବାର ପଢ଼ି ସେହି ମର୍ମରେ ତାଙ୍କ ମନ୍ତବ୍ୟଟି ଲେଖିଗଲେ । ସେ ଉକ୍ତିଟି :—

> "Big industries help the rich to be richer,
> Cottage industries feed hunger."

ପୁଣି ବମ୍ବେ ପ୍ରଦେଶର ସ୍ୱର୍ଗୀୟ ବି. ଜି. ଖେର ଆସି ଟଙ୍ଗାଯାଇଥିବା ସବୁ ଗୃର୍ଟ ଗୁଡ଼ିକର ଇଂରାଜୀ ଅଂଶ ପଢ଼ି ପଢ଼ି ଅତି ଆଗ୍ରହର ସହିତ ସେ ଗୁଡ଼ିକର ନକଲ କରାଇ ନେଲେ । ଏଥିରେ ମୁଁ ଉତ୍ସାହିତ ହୋଇ ଆଉ କେତେଗୁଡ଼ିଏ ଓଡ଼ିଆ ଉକ୍ତି ତହିଁର ଇଂରାଜୀ ଅନୁବାଦ ସହିତ ଲେଖିଗଲି । ମନେ ହେଲା ଇଂରାଜୀ ଲେଖାଗୁଡ଼ିକ ଅନ୍ୟ କାହାଦ୍ୱାରା ସଂଶୋଧନ କରାଇନେଲେ ଭଲ ହୁଅନ୍ତା । ସେପର ଲୋକ ଯେ ଏଠାରେ ନାହାନ୍ତି, ତାହା

କହୁ ନାହିଁ । କିନ୍ତୁ ଯାହାଙ୍କର ଶକ୍ତି ଥିବ ଏବଂ ସମସ୍ତ ଦେଇ ପାରିବେ, ଏପରି କାହାକୁ ପାଇବା କେଉଁଠାରେ ?

ମନେ ପଡ଼ୁଅଛି ଶ୍ରୀ ବିଚ୍ଛନ୍ଦ ବାବୁଙ୍କ ନାମ, ତାଙ୍କ ସହିତ ବହୁ ପୂର୍ବରୁ ନାନା କାର୍ଯ୍ୟଦ୍ୱାରା ଘନିଷ୍ଠତା ଜନ୍ମିଥିଲା, ବର୍ତ୍ତମାନ ସେ ଯେଉଁ "କଳିଙ୍ଗ ଭାରତୀ" ଅନୁଷ୍ଠାନ ଗଠନରେ ଲାଗି ପଡ଼ିଛନ୍ତି ତାହା ଆରମ୍ଭ ବେଳେ ମୁଁ ଅବଶ୍ୟ ତହିଁରେ ଯଥାଶକ୍ତି ସହଯୋଗ କରି ପାରିଥିଲି । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ତହିଁରୁ ସେ ମୋତେ ବାଦ ଦେଇ ନାହାନ୍ତି । ଥରେ ସେ ମୋହର କେତେ-ଗୁଡ଼ିଏ କବିତା ସଂଗ୍ରହ କରି ପୁସ୍ତକ ଆକାରରେ ତାହା ଛପାଇବା ନିମନ୍ତେ ବହୁ ଚେଷ୍ଟା କରିଥିଲେ । ପୁସ୍ତକର ନାମ "ସ୍ୱଦେଶ ଦର୍ପଣ" ରଖି "ଗ୍ରନ୍ଥପରିଚୟ" ଶିରୋନାମାରେ ଗୋଟିଏ ସୁଦୀର୍ଘ ମୁଖବନ୍ଧ ଲେଖି ବହୁ ଯତ୍ନ କରିଥିଲେ । ମୋ ଦୁର୍ଭାଗ୍ୟରୁ ତାଙ୍କର ସେ ଉଦ୍ୟମ ସଫଳ ହୋଇ ପାରି ନଥିଲା । ମୋହର ସେଭଳି ଲେଖାର ସଂଖ୍ୟା ବହୁତ ବଢ଼ି ଯାଇଥିଲେ ହେଁ ଏପର୍ଯ୍ୟନ୍ତ ତାହା ଛପା ହୋଇ ପାରି ନାହିଁ ।

ଏହି ପୁସ୍ତକର ଇଂରାଜୀ ଅଂଶ ସଂଶୋଧନ କରିଦେବା କଥା ବିଚ୍ଛନ୍ଦ ବାବୁଙ୍କୁ କହିବା ମାତ୍ରେ ସେ ସଙ୍ଗେ ସଙ୍ଗେ ଅତି ଆନନ୍ଦର ସହିତ ତହିଁର ଭାର ଗ୍ରହଣ କଲେ । ଖାଲି ଯେ ସଂଶୋଧନ କରି ଦେଇଛନ୍ତି ତା' ନୁହେଁ; ଓଡ଼ିଆ ଉକ୍ତିଗୁଡ଼ିକୁ ସମ୍ପୂର୍ଣ୍ଣ ବଜାୟ ରଖି ତହିଁର ଭାବ ଓ ମହତ୍ତ୍ୱ ଅନେକ ସ୍ଥଳରେ ଇଂରାଜୀ ଭାଷାରେ ବହୁ ପରିମାଣରେ ବୃଦ୍ଧି କରି ଦେଇ ଅଛନ୍ତି । ଏ କୃତିତ୍ୱ ସେ ତାଙ୍କର ଅଟେ । ଏ ପୁସ୍ତକର ନାମ କରଣ ମଧ୍ୟ ତାଙ୍କର । ମୁଁ ତାଙ୍କଠାରେ ବିଶେଷ ଋଣୀ । ତାଙ୍କୁ ଧନ୍ୟବାଦ ଦେବା ନିମନ୍ତେ

ମୁଁ ସମ୍ପୂର୍ଣ୍ଣ ଅନୁଭବ କରୁଛି ଯେ, ମେ ହର ଭାଷା ନାହିଁ । ମୋ ପ୍ରତି ତାଙ୍କର ଯେତେଦୂର ଶ୍ରଦ୍ଧା ତାହା ସେ ନିଜେ ଏହି ପୁସ୍ତକର ମୁଖବନ୍ଧରେ ଖୋଲି ଦେଇ ଅଛନ୍ତି । ଭଗବାନ୍ ସର୍ବଥା ତାଙ୍କର ମଙ୍ଗଳ ସାଧନ କରନ୍ତୁ । ମୁଁ ଏତିକି ମାତ୍ର ଭଗବାନ୍‌ଙ୍କଠାରେ ପ୍ରାର୍ଥନା କରୁଅଛି ।

ଏହି ପୁସ୍ତକ ଖଣ୍ଡିକ ପାଠକ ପାଠିକାମାନଙ୍କର ଗ୍ରହଣୀୟ ହେଲେ ଆପଣାକୁ ଧନ୍ୟ ମଣିବ ।

ଇତି

"ଲେଖକ"



# ମୁଖବନ୍ଧ

ପୂଜ୍ୟ ଡକ୍ଟର ଭିକାରୀ ଚରଣ ପଟ୍ଟନାୟକ ଏ ସାଧନା—ଦରିଦ୍ର ଦେଶରେ ସାଧନାର ଏକ ସମୁଜ୍ଜ୍ୱଳ ଦୀପସ୍ତମ୍ଭ । ନାଟ୍ୟକାର ରୂପେ ଓ କବିରୂପେ ଜୀବନର ଅନେକ ବର୍ଷ ବ୍ୟତୀତ କଲାପରେ ସେ ଉତ୍କଳର କମ ବର୍ଦ୍ଧିଷ୍ଣୁ ଦାରିଦ୍ର୍ୟର ପ୍ରତିକାର କରିବା ନିମନ୍ତେ କୁଟୀର ଶିଳ୍ପର ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ସ୍ଥାପନ କରି ଏଣ୍ଡି, ଅଭଙ୍ଗା କଣ୍ଡେଇ ପ୍ରଭୃତି ଏମନ୍ତ କୁଣ୍ଡେଏ ସାମଗ୍ରୀ ପ୍ରସ୍ତୁତ କରିବାର ବାଟ ଦେଶବାସୀଙ୍କୁ ଦେଖାଇ ଅଛନ୍ତି ଯାହା ଦେଖିଲେ ବିସ୍ମୟରେ ଅଭିଭୂତ ହେବାକୁ ପଡ଼େ । ଯେଉଁ ସବୁ ଗଛର ଓ ଲତାର ପତ୍ର, ଚେର, ଓ ଲଟି ଆଦି ଆମ୍ଭମାନଙ୍କର ଦୃଷ୍ଟି ଆଦୌ ଆକର୍ଷଣ କରେ ନାହିଁ ସେ ସବୁର ବ୍ୟବହାରକୁ ସେ ଅବିଷ୍କାର କରି ତଦ୍ୱାରା ବହୁବିଧ ଅମୂଲ୍ୟ ଶିଳ୍ପ ସାମଗ୍ରୀ ପ୍ରସ୍ତୁତ କରିଛନ୍ତି ଏବଂ ସାଧାରଣତଃ ବ୍ୟାପକ ଭାବରେ ନଷ୍ଟ ହୋଇ ଯାଉଥିବା ଅପରିମିତ କଞ୍ଚାମାଲ ନାମ ମାତ୍ର ମୂଲ୍ୟରେ ସଂଗ୍ରହକରି କିପରି ଅତି ପ୍ରୟୋଜନୀୟ ବ୍ୟବହାର୍ଯ୍ୟ ସାମଗ୍ରୀମାନ ସ୍ୱଳ୍ପ ଆୟାସରେ ଘରେ ଘରେ ପ୍ରସ୍ତୁତ କରାଯାଇପାରେ ତତ୍ପ୍ରତି ଏ ଦେଶର ଆଖି ଫିଟାଇ ଦେଇ ଅଛନ୍ତି । ଅତି ଉଚ୍ଚପଦସ୍ଥ ରାଜପୁରୁଷ ଓ ବିଦେଶୀ ପର୍ଯ୍ୟଟକ-ମାନେ ତାଙ୍କ ସାଧନାର ଫଳମାନ ଦେଖି ବିମୁଗ୍ଧ ଓ ବିସ୍ମିତ ହୋଇଅଛନ୍ତି । ପୂଜ୍ୟ ଡକ୍ଟର ମହୋଦୟ ଅଶୀ ବର୍ଷ ପାର ହୋଇ ଯାଇଥିଲେ ସୁଦ୍ଧା ଏବେ ମଧ୍ୟ ଅତନ୍ଦ୍ରିତ ଭାବରେ ତାଙ୍କ ଜୀବନର

ବ୍ରତ ସାଧନରେ ନିଯୁକ୍ତ ରହି ଅଛନ୍ତି । ତାଙ୍କ ସାଧନା ପୀଠରେ ତାଙ୍କ ପାଦତଳେ ବାରମ୍ବାରନ୍ତର ଭକ୍ତି-ଅର୍ଘ୍ୟ ଅର୍ପଣ କରି ମୁଁ ଧନ୍ୟ ହୋଇ ଅଛି ।

ବର୍ତ୍ତମାନ ଜୀବନର ବିଭିନ୍ନ ସମସ୍ୟାରେ ରଚିତ ଗୁଡ଼ିଏ ସଦୁକ୍ତିକୁ ଏକତ୍ର କରି ସେ ଇଂରାଜୀ ଅନୁବାଦ ସମେତ ସେ ଗୁଡ଼ିକୁ "ହିତୋକ୍ତି ମୁକ୍ତାବଳୀ" ନାମ ଦେଇ ପ୍ରକାଶ କରୁ ଅଛନ୍ତି । ଏଥିରେ "ନାରୀ", "ହାତ ଓ କାମ" "ହାତ ଓ କଳ", ଓ "ଆପଣା ଘର" ପ୍ରଭୃତି ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ସଦୁକ୍ତି ଗୁଡ଼ିକ ସଜ୍ଜିତ ହୋଇଅଛି । ପୂଜ୍ୟ ତନ୍ତ୍ରୀ ମହୋଦୟ ଦେଶର ଶିଳ୍ପ ଜାଗରଣ ନିମନ୍ତେ ଯେତେ କାମ କରିଅଛନ୍ତି ତା ଅପେକ୍ଷା ଚିନ୍ତା କରିଅଛନ୍ତି ଯେ ଅଧିକ । ଶିଳ୍ପ ଜାଗରଣ ପାଇଁ ନିଜ ଆଗ୍ରହ ଓ ଉତ୍ସାହକୁ ସେ ଦେଶବାସୀଙ୍କଠାରେ ସଞ୍ଚାରିତ କରିଦେବା ପାଇଁ ତାଙ୍କ ବହୁମୂଲ୍ୟ ଚିନ୍ତା ସମ୍ପଦକୁ ଏହି ସବୁ ମହାର୍ଘ ସଦୁକ୍ତିମାନଙ୍କ ମାଧ୍ୟମରେ ପ୍ରକାଶ କରିଅଛନ୍ତି । ଦୁଇ ଦୁଇ ଧାଡ଼ି ବା ସ୍ଥଳ ବିଶେଷରେ ଗୋଟି ଗୋଟି ଧାଡ଼ିରେ ସେ ଯାହା ଯାହା ପ୍ରକାଶ କରିଅଛନ୍ତି ସେ ସବୁକୁ ସମ୍ପ୍ରସାରିତ କଲେ ଖଣ୍ଡେ ଖଣ୍ଡେ ଗ୍ରନ୍ଥ ହୋଇପାରେ । ଏସବୁ ସଦୁକ୍ତି ତାଙ୍କ ପ୍ରାଣର ବାଣୀ ଏବଂ ଜାତି ପ୍ରତି ଏସବୁର ଚିରନ୍ତନ ମୂଲ୍ୟ ରହିଅଛି । ଭାରତର ବିଭିନ୍ନ ରାଜ୍ୟର ଚିନ୍ତାଶୀଳ ଲୋକେ ପ୍ରଦତ୍ତ ଇଂରାଜୀ ଅନୁବାଦ ସାହାଯ୍ୟରେ ଏ ଓଡ଼ିଆ ସଦୁକ୍ତି ଗୁଡ଼ିକର ମର୍ମ ଅବଧାରଣ କରି ପାରିବେ ।

(୧) ଶକ୍ତି ସ୍ୱରୂପିଣୀ ରମଣୀ ଗଣ । ଜାତୀୟ ସମ୍ପଦ ଦେଶ ଭୂଷଣ । (୨) ତୁଚ୍ଛା ଅଭିଳାଷ ପାଣିରେ ଗାର । କରି ଯା

ଢାମରେ ଯେ ଯେତେ ପାର । (୩) ଚମକ୍କ ନପିବ ଜଳକୁ ଗୃହିଁ । ହାତ ସଙ୍ଗେ ଜଳ ଛୁଜା ନ ଯାଇ । (୪) ଏଙ୍କା ଅଳସ୍ୟକୁ ଯେ ପାରେ ଜିଣି । ସାର ଦୁନିଅକୁ ପାରେ ସେ ଜିଣି । (୫) ଶୂନ୍ୟେ ଶୂନ୍ୟେ ଅମ ବାନା ଉଡ଼ୁଛି । ଧୀରେ ଧୀରେ ଏଣେ ଡଙ୍ଗା ଗୁଡ଼ୁଛି ।

ସଦୁକ୍ତ ମାନଙ୍କ ମଧ୍ୟରୁ ଏହୁ ପାଞ୍ଚଟି ମାତ୍ର ନମୁନା ଜବ ପଠକ ପାଠିକାମାନଙ୍କ ଆଗରେ ଦୋଉଅଛୁ । ପୂଜ୍ୟ ଡକ୍ଟର ମହୋଦୟଙ୍କ ରଚନାର ବଳିଷ୍ଠ ଶୈଳୀ ଓ ବୈଶିଷ୍ଟ୍ୟ-ସମନ୍ୱିତ ଗଣ ଭାଷା ଏ ସବୁରେ ପୂର୍ଣ୍ଣ ପ୍ରକଟିତ । ପୂଜ୍ୟ ଡକ୍ଟର ମହୋଦୟ ଅମ୍ଭମାନଙ୍କୁ ସାଧନା ଶିଖାଇବାକୁ ଆହୁରି ବହୁବର୍ଷ ଅମ୍ଭମାନଙ୍କ ମଧ୍ୟରେ ଜୀବିତ ଥାନ୍ତୁ ଏବଂ ତାଙ୍କ ବାତ୍ସଲ୍ୟ ବ୍ୟଞ୍ଜୀ ସ୍ମିତ ହାସ୍ୟ ମିଶ୍ରିତ ସ୍ୱାଗତ ବାଣୀ ଅମ୍ଭମାନଙ୍କ ଶ୍ରୁତି ରଞ୍ଜନ କରୁଥାଉ ।

ଶ୍ରୀ ବଞ୍ଛନିଧି ଚରଣ ପଟ୍ଟନାୟକ,
ପ୍ରତିଷ୍ଠାତା ସମ୍ପାଦକ,
କଳିଙ୍ଗ ଭାରତୀ ।
ତା ୧୯ । ୭ । ୬୮



# ହିତୋକ୍ତି ମୁକ୍ତାବଳୀ

# A ROSARY OF SAYINGS

## ନାରୀ

## WOMEN

ମାତାଙ୍କ ଗୁଣରେ ଜାତି ସବଳ,
ମାତାଙ୍କ ଦୋଷରେ ଜାତି ଦୁର୍ବଳ ।

Strength of mothers nation's
strength engenders,
Nation is weak if weak are mothers.

— ୨ —

ଜାତି-ଭାଗ୍ୟ ଜାତି ଜନ ହାତରେ,
ଜନ-ସୃଷ୍ଟି ଏକା ମାତାଙ୍କ କରେ ।

It is men that forge a nation's fate,
It is mothers who these men beget.

— ୩ —

ବ୍ୟକ୍ତି ଗଣନାରୁ ଜାତି ପ୍ରମାଣ,
ମାତାଙ୍କ ଗୁଣରେ ବ୍ୟକ୍ତି ନିର୍ମାଣ ।

It is individuals that constitute a nation,
Each individual verily is a mother's creation.

— ୪ —

ନାରୀ ଯେବେ ହେବେ କର୍ତ୍ତବ୍ୟହୀନା,
ଜାତିର ସୌଭାଗ୍ୟ କଳ୍ପନା ସିନା ।

If women do become lost to duty,
A myth sure is prosperity.

— ୫ —

ଯେ ଜାତିରେ ଯୋଗ୍ୟା ରମଣୀ ଯେତେ,
ସେ ଜାତି ଶକତି ଅଧିକ ତେତେ ।

The more capable the women are,
The higher riseth the nation sure.

— ୬ —

ଯେ ଗୃହେ ରମଣୀ ସତର୍କ ଥାଇ,
ସେ ଗୃହେ ଅଶାନ୍ତି ପ୍ରବେଶ ନାହିଁ ।

If women in home are careful,
Everything in peace, all cheerful.

— ୭ —

ଗୃହ ଶାନ୍ତି ଗୃହ ସୌଭାଗ୍ୟ ପାଇଁ
ଗୃହର ଗୃହିଣୀ ଏକାନ୍ତ ଦାୟୀ ।

Domestic peace and domestic pleasure,
Rest in hands of housewife sure.

— ୮ —

ନାରୀଙ୍କ ଗୁଣରେ ଗୃହ ବିକାଶ,
ନାରୀଙ୍କ ଦୋଷରେ ଗୃହ ବିନାଶ ।

Wise women make home prosper,
Foolish ones its ruin ensure.

— ୯ —

ସମାଜରେ ନରନାରୀଙ୍କ ସ୍ଥାନ,
କେହ ତ କାହାକୁ ନୁହନ୍ତି ସାନ ;
ଜାତି ମୂଳ ଭିତ୍ତି ଗଢ଼ନ୍ତି ନାରୀ,
ନାହିଁ ସେ ଶକତି ଆଉ କାହାରି ।

Men and women are equal in the field,
Nation's foundation women alone build.

— ୧୦ —

ନାରୀଙ୍କ ଗୁଣରେ ଜାତି ବଢ଼ନ୍ତି,
ନାରୀଙ୍କ ଦୋଷରେ ଜାତି ପଡ଼ନ୍ତି ।

Women fit make a nation prosper
Unfit ones do its fall ensure.

— ୧୧ —

ନାରୀ ଜ୍ଞାନବତୀ ଧନ୍ୟା ମହୀରେ
କୁଳକୁ ଗୌରବ ସମାଜ ସୌରଭ
ଦେଶର ସୌଭାଗ୍ୟ ବୃଦ୍ଧି ତହୁଁରେ ।

On wise women doth a nation rest.
Glory to family and grace to race are they
Enriching the national treasure chest.

— ୧୨ —

ନାରୀଙ୍କ ମହତ୍ତ୍ୱ ବୁଝିଲେ ନାରୀ
ଅଶାନ୍ତି ନ ଥିବ କେବେ କାହାର ।

If women feel how great they are
Peace will reign sure everywhere.

— ୧୩ —

ମାତାଙ୍କ ଦୋଷରେ ସନ୍ତାନଗଣ
ଅଯୋଗ୍ୟ ଅଭାଗ୍ୟ ଦୁଃଖ ଭାଜନ ।

Through mother's faults a child is lost,
The mother's lapse maketh its life accursed.

— ୧୪ —

ଖଟାଇ ଜାଣିଲେ ମାତା କୌଶଳ,
ପିଲାଙ୍କୁ ଗଢ଼ିବା ଅତ ସରଳ ।
It is mother's skill that easily can
Build up children to be men.

— ୧୫ —

ସମାଜ କଲ୍ୟାଣ ବାସନା ଯେବେ,
ନାରୀଙ୍କୁ ଅବଜ୍ଞା ନ କର କେବେ ।
If social welfare is the desire,
Neglect the women never, oh never.

— ୧୬ —

ନାରୀ ଜାତ ଯେବେ ହେବେଟି ଦୃଢ଼,
ଏକା ସେ ଗଢ଼ିବେ ଜାତର ସ୍ତମ୍ଭ ।
If women be bold they can build
Pillars for nation that will not yield

— ୧୭ —

ସବଳା ନ ହେଲେ ଅବଳା ଜାତ
ଦୃଢ଼ ହେବ କାହୁଁ ଜାତର ଛାତ ?
Unless the women be bold and strong,
How can the nation stand for long ?

— ୧୮ —

ଶକ୍ତି ସ୍ୱରୂପିଣୀ ରମଣୀ ଗଣ
ଜାତୀୟ ଶକତ, ଦେଶ ଭୂଷଣ ।
Women are the incarnated power
Nation's strength and country's dower.

— ୧୯ —

ନାରୀ ଜାତ ଯେବେ ବସିବେ ଅଡ଼ି
ନର ଝୁରୁଥିବେ ଘଡ଼ିକ ଘଡ଼ି ।
If the woman strike work ever
Men are bound to beg their favour.

— ୨୦ —

ନ ରଖିବ ଯେବେ ନାରୀଙ୍କ ଦୃଷ୍ଟି,
ଲୁପ୍ତ ହୋଇ ପାରେ ମନୁଷ୍ୟ ସୃଷ୍ଟି ।
If the women do not choose to care,
The human race will sure disappear.

— ୨୧ —

ଜାତିର ଉନ୍ନତ ଯେବେ କାମନା,
ସବୁ ଛାଡ଼ି ଆଗେ ନାରୀଙ୍କୁ ବନା ।
If the nation is to rise,
First prepare the women to be wise.

— ୧୧ —

ଜାତି ଗଢ଼ି ହେବା ମୂଳରେ ଜାଣ,
ଲୋଡ଼ା ନାରୀ ସବୁ ପ୍ରକାରେ ଠାଣ ।

The first need for a nation to be built,
**Is its women turned out all round fit.**

— [illegible] —

ନର ଯେଣୁଁ ଭଙ୍ଗ ସମାଜକୁ ଭିଡ଼ି,
ଦେଲେଣି ଉଠିବା ବାଟ ବଗାଡ଼ି ।

ନାରୀ ନ ଜାଗିଲେ, ନାରୀ ନ ଲାଗିଲେ,
ନ ହେବ ସେ ବାଟ ଆଉ ସଜାଡ଼ି ।

The men have spoiled the nation's progress
Taking the lead by force,
The women alone by taking up the rein
Can sure change its course.

— ୧୪ —

ନାରୀଙ୍କ ହୃଦୟ ସଦା ସରଳ,
ସେତକ ନରଙ୍କ ଠାରେ ବରଳ ।

Women's mind is of guiles free,
Men can never their equals be.

— ୧୫ —

ନାରୀ ଜାତି ଯେବେ ନ ହେବେ ଟାଣ,
ଠାକ ନ ପାରିବ ଜାତିର ପ୍ରାଣ ।

Unless the women do stand strong,
The nation cannot exist long.

— ୧୬ —

ନର ନ ପାରନ୍ତି ସମାଜ ଶୃଙ୍ଖଳ,
ନାରୀ ଦମ୍ଭ ହେଲେ ନେବେ ସମ୍ଭାଳ ।

To control the society men prove incapable,
Women if strong are likely to be able.

— ୧୭ —

ଧର୍ମ ଡରିଲାଣି ନରଙ୍କୁ ଏବେ,
ନାରୀଙ୍କୁ ଛାଡ଼ି ନ ପାରିବ କେବେ ।

Religion at present dreads the man,
It can never forsake women.

— ୧୮ —

କୁଳବତୀ ନାରୀ ଗୃହ ସମ୍ବଳ,
ତାଙ୍କ ବିନା ଗୃହ ଦଣ୍ଡେ ଅଚଳ ।

A devoted housewife is the pivot of home,
Without her home to ruin doth come.

— ୨୯ —

ନରଙ୍କର ନାହିଁ ନାରୀଙ୍କ ଧୈର୍ଯ୍ୟ,
ଶୂନ୍ୟରୁ ଖୋଜନ୍ତି ନର ଐଶ୍ୱର୍ଯ୍ୟ ।

Patience of women is wanting in man,
Men seek fortune anyhow they can.

— ୩୦ —

ଧୈର୍ଯ୍ୟ ଅବତାର ରମଣୀ ଜାତ,
ନର ଧୈର୍ଯ୍ୟହୀନ ହୋଇ ଅଖ୍ୟାତ ।

Women are images of patience,
Men blameworthy for its absence.

# ହାତ ଓ କାମ

## HAND AND WORK



ହାତଟି ସଜାଡ଼ ଯେବେ ଆଗରେ,
ସବୁ କାମ କରିଯିବ ବାଗରେ ।
First of all, prepare your hand,
Success in everything you'll command.

— ୧ —

ନିଜ ହାତକୁ ଯେ ଚିହ୍ନିବ ନାହିଁ,
ତା'ଠାରୁ ଅଯୋଗା କେ ଦୁଣି ଥାଇ ।
One who does not value his hand,
Is the greatest fool on land.

— ୩ —

ହାତେ ହାତେ କାମ ନ କରେ ଯେହୁ,
ହାତ ଗୁଣ କାହୁଁ ବୁଝିବ ସେହୁ ?

How can hand's virtue be known,
With hands if seeds have not been sown ?

— ୪ —

ଜୀବନ କହିଲେ କାମ ବୁଝାଇ,
କାମ ନାହିଁ ଯେବେ ଜୀବନ କାହିଁ ?

Life is work and inertia death,
Dead is the idleman though he has breath,

— ୫ —

କାମରୁ ସକଳ ସୌଭାଗ୍ୟ ଜାତ,
ଆଳସ୍ୟ ଅଟଇ ଦୁର୍ଭାଗ୍ୟ ତାତ ।

With work your fate you build,
Poverty sure sloth doth breed.

— ୬ —

କାମଟି ଚହ୍ନାଇ ଦଏ ଜୀବନ,
କାମର ଅଭାବ ମୃତ୍ୟୁ ଲକ୍ଷଣ ।

Action is life know O Friend,
Inaction sure is life's end.

— ୭ —

କାମ କର କାମ ବଳେ ଡରିବ,
କାମ କର କାମ-ପ୍ରୀତି ବଢ଼ିବ ।

Work and work and kill work's fear,
Work and work, the work will be dear.

— ୮ —

କାମ କର କାମ ଯିବଟି ସରି,
କାମ କର ଦୁଃଖ ଯିବଟି ହରି ।

Work and work, the work will be finished,
Work and work all wants will be banished.

— ୯ —

କାମର ମହତ୍ତ୍ୱ ବୁଝଇ ଯେହୁ,
କାମରୁ ସୌଭାଗ୍ୟ ଲଭଇ ସେହୁ ।

If to work you give regard,
Fortune is your sure reward.

— ୧୦ —

ଅକାମୀ ବୋଲି ତ ପଦାର୍ଥ ନାହିଁ;
ଆମ ହାତ ଗୁଣେ ଯେତେ ଯେ ଅକାମୀ
ଅମୂଲ୍ୟ ପଦାର୍ଥ ପାଲଟି ଯାଇ ।

Don't treat anything as waste,
Inside waste wealth doth rest.

— ୧୧ —

କାହା ଅନୁଗ୍ରହ ଲୋଡ଼ିବ ଧନ ପାଇଁ କ ପାଇଁ,
କାମ ପଛେ ପଛେ ଧନ ଯେ ବଳେ ବଳେ ଗୋଡ଼ାଇ ।

A deft hand can bring money out,
Potency of hand do never doubt.

— ୧୨ —

ଛୋଟ ବଡ଼ ନାହିଁ କାମ ଭିତରେ,
କାମ ଛୋଟ ବଡ଼ ଆମ ହାତରେ ।

No work is high or low,
It is just as your hand can show.

— ୧୩ —

ମୁଣ୍ଡ ହାତ ଦୁହେଁ ପ୍ରଭୁଙ୍କ ଦାନ,
କେହ ତ କାହାକୁ ନୁହନ୍ତି ସାନ ।
ଗୋଟିକୁ ଛାଡ଼ିଲେ ଆରଟି ମାଟି;
ନ ଭୂଲିବ ଏହ କଥାଟି ଖାଣ୍ଟି ।

God has given both hand and brain,
Either is great in its domain.
One depends on the other,
Twain are parted never, Oh never.

— ୧୪ —

କର୍ମହିଁ ଜୀବନ, ଜୀବନ କର୍ମ,
ଜୀବନର ହେଲା କର୍ମହି ଧର୍ମ ।

Work is life and life is work,
Without work the life is dark.

— ୧୫ —

ଇଚ୍ଛା ଅଭିଳାଷ ପାଣିରେ ଗାର,
କରି ଯା' କାମରେ ଯେ ଯେତେ ପାର ।

Desires are desires having no shape,
Without work to void escape.

— ୧୬ —

ହାତର ମହତ୍ୱ ନ ବୁଝେ ଯେହୁ,
ଅଯୋଗା ଅଭାଗା ନକମା ସେହୁ ।

Incompetent, unfortunate,
and worthless is he,
The value of his own hands who cannot see.

— ୧୭ —

ନକମା ନିନ୍ଦଇ ହାତକୁ,
ଗୃହଁ ବସିଥାଏ ନାଥଙ୍କୁ ।

The worthless blames his own hands,
Lost in dreams of fairy lands.

— ୧୮ —

କାମ କରି ଯିବା ସରଳ,
ପରଙ୍କୁ ଚାହିଁବା ଅକଳ ।

It is easy to work all by self,
To wait for others is trouble itself.

— ୧୯ —

ପ୍ରଭୁ ଦେଇଛନ୍ତି ହାତ ଆମ୍ଭଙ୍କୁ,
କାହିଁ ରହିଥିବା ଚାହିଁ ପରଙ୍କୁ ?

God has provided us with hand,
Why should we on others depend.

— ୨୦ —

ପଛ ଘୁଞ୍ଚା ଦେଲେ କାମ ବେଳରେ,
ପଡ଼ି ରହିଥିବ ସଦା ପଛରେ ।

If lag behind when work is there,
Come to front, you can never.

— ୨୧ —

କାମ ବାଛି ନଅ ରୋଗ ବେଳକୁ,
ରୋଗ ଦାଉ ହଟି ଯିବ ଫଳକୁ ।

Pick up some works when you are ill,
Pains of illness the work can kill.

— ୨୨ —

ଯେ ଜନ ପ୍ରଭୁଙ୍କୁ ହେଜି ମନରେ,
ଲାଗି ରହୁ ଥିବ ସଦା କାମରେ;
ଚିର ସୁଖ ଶାନ୍ତି ହାତେ ତାହାର,
ଅଶାନ୍ତି କଦାପି ନ ପାରେ ଘାରି ।

With God in mind and work in hand,
On pedestal of peace you stand.

— ୨୩ —

ହୃଦେ ଅନ୍ତର୍ଯ୍ୟାମି, କର୍ମ ହସ୍ତରେ,
ମନୁଷ୍ୟ ଦେବତା ଶାନ୍ତି ରାଜ୍ୟରେ ।

God in mind and work in hand,
Man is lord in a peaceful land.

— ୨୪ —

ଲାଗି ରହୁ ଥିଲେ ସଦା କାମରେ
ହଟି ଯିବ ସବୁ ଦୁଃଖ ସଜରେ ।

Engage yourself in work you ever,
All miseries will for sooth disappear.

— ୧୫ —

କାମ କର କାମମିଠା ଝରିବ,
ପର ଅନୁଗ୍ରହ କପାଁ ଝୁରିବ ?

Work and work will yield its pleasure,
Why should you crave another's favour ?

— ୧୬ —

କାମ ପାଇଁ କାମ କରିବ ଯେବେ,
ସେ କାମ ସଫଳ ନ ହେବ କେବେ ।
କାମ ପାଇଁ କାମ କରିବ ଯେବେ,
ନାମ ବଳେ ଧାଇଁ ଆସିବ ତେବେ ।

Work for name ends in shame,
Work for work brings sure fame.

— ୧୭ —

ମନୁଷ୍ୟ ଦେବତା କାମ ବଳରେ,
ମନୁଷ୍ୟ ପିଶାଚ କାମ ଫଳରେ ।

Man is god if work is pure,
Man is devil if ill-doer.



— ୨୮ —

କାମ କରିଯାଅ ଯେ ଯେତେ ପାର,
ଅପେକ୍ଷା ନ ରଖି କେବେ କାହାର ।

As far as possible work yourself,
**Never wait for other's help.**

— ୨୯ —

ଚଞ୍ଚଳ ମନକୁ ଦାବିବା ପାଇଁ,
କାମ ବାଛି ବାଛି ଦିଅ ଲଗାଇ ।
ଅଳସୁଆ ହୋଇ ବସିବ ଯେବେ,
ମନକୁ ସମ୍ଭାଳ ନ ହେବ କେବେ ।

To control the mind the best work choose,
A moment even in sloth do not lose.
A Devil's workshop ever is sloth,
It is a flame to which your mind is a moth.

— ୩୦ —

କାମରେ କୁହୁକ ଶକତ ଥାଇ,
ମନ କଲେ ଧନ ଆସିବ ଧାଇଁ ।

Work verily like a magic wand,
Will bring sure money to your command.

— ୬୫ —

କାମ କରିଯିବ କାମକୁ ଚାହିଁ,
ଆଗ ପଛ କେବେ ଭାବିବ ନାହିଁ ।

Work as work is always fair,
For results you need never care.

— ୬୬ —

କରିଯାଅ ଯାହା କରିବ ଯେବେ
କରିବା କରିବା ନ କହ କେବେ ।

Work work in the living hour,
To to-morrow do nothing defer.

— ୬୭ —

ହାତ ଲାଗିଥିବ କାମରେ ଯେତେ,
ହାତ ବଳ ବଢୁଥିବଟି ସେତେ ।

The more the hand in work engaged,
The more its strength for work is raised.

— ୬୮ —

ହାତକୁ ପାଶୋରି ହେଲୁଣି ପଙ୍ଗୁ,
ଘରଧନ ବୋହି ଦେଲୁଣି ଅଙ୍ଗୁ ।

Forgetting our hands we prove invalid,
Looted alas are our treasures solid.



କାମ କରିବାରେ ଯେ ଲାଗିଥିବ,
କାମ କରିବାର ବଳ ବଢ଼ିବ ।
ଥରେ କାମ ପ୍ରୀତି ଗଲେଟି ମାଡ଼ି,
କାମକୁ କଦାପି ନ ହେବ ଛାଡ଼ି ।

**Work improves the working power,**
**Work once liked you cannot spare.**



ହାତ ବଳ ହତିଆର ତ ନାହିଁ;
ହାତ ପରଶରେ ଧୁଳା ବାଲି ଗୋଡ଼
ସହଜେ ସୁବର୍ଣ୍ଣ ପାଲଟି ଯାଇ ।

No appliance is superior to hand,
By touch it turns to gold the sand.



ହାତକୁ ବଳ ତ ହତିଆର ଆଉ
ନାହିଁ କିଛି ଜଗତରେ,
ହାତକୁ ଅକାମୀ କଲେ ତ ଅକାମୀ
ହେବାଟି ସବୁ କାମରେ ।

An appliance superior to hand,
Is never found anywhere.
By neglecting hands we neglect ourselves,
Proving us fit for nothing ever.

— ୩୮ —

ହାତର ମହିମା ନ ବୁଝେ ଯେହୁ,
ଅତି ହତଭାଗା ଜାଣିବ ସେହୁ ।

One who knows not the worth of hand,
Most unfortunate is he on the land.

— ୩୯ —

ଯଶ ପଉରୁଷ ଯେତେ ବିଭବ,
ହାତରୁ ତ ଅଧିକରେ ଉଦ୍ଭବ ।

Name, fame and all treasures,
Hand produces more than others.

— ୪୦ —

ଦୁଃଶ୍ଚିନ୍ତାକୁ ହେଳେ ଦାବିବା ପାଇଁ,
କାମ ଚିନ୍ତା ହେଲା ଠାଣ ଦବାଇ ।

To check the evil thoughts it is sure,
Thoughts for work are sovereign cure.

— ୪୧ —

ଖଟିବା ଦେଖିଲେ କାମରେ ଥରେ,
ହଟି ପଳାଇବ ଦୁଃଶ୍ଚିନ୍ତା ଡରେ ।

Seeing you engaged in works ever,
Evil thoughts would fly in fear.

— ୪୨ —

ସ୍ୱାର୍ଥକୁ ପାଶୋରି ପରଙ୍କ ପାଇଁ,
କାମ କର କାମ ବ୍ୟର୍ଥ ନ ଯାଇ ।

Work for others forget self,
Success in hands god will help.

— ୪୩ —

କର୍ତ୍ତବ୍ୟ ପାଳନେ ନ କର ତ୍ରୁଟି,
ତ୍ରୁଟି ଧରାଇବ ଆପଣା ଚୁଟି ।

Duty is duty heed it ever,
Lapse a snare, know it sure.

— ୪୪ —

ଯେ ଯାହା କର୍ତ୍ତବ୍ୟ ଆଗେ ଗୁଣିବ,
କି ହେବ ନ ହେବ ପ୍ରଶ୍ନେ ଭାଳିବ ।

Duty as duty first respect ;
Question of results do forget.

— ୪୫ —

ମନ ଦୁଃଖ ହେଲେ ଲାଗ କାମରେ,
ନ ରହିବ ମନ ଦୁଃଖ ମନରେ ।

To remove all troubles from the mind,
Put yourself to work of some kind.

— ୪୬ —

ଲଗାଇ ପାରିଲେ କାମରେ ମନ,
ବଢ଼ିଯିବ କାମ କରିବା ଶକ୍ତି ।

To work if you engage your mind,
The working power doth increase you find.

— ୪୭ —

ଯେ ଯେତେ ପାରିବ କାମରେ ଖଟି,
ତା ଦୁଃଖ ଟେଡ଼କ ଯିବଟି ଛୁଟି ।

The more one devotes to works his labour,
His miseries vanish and comes fortune's dower.

— ୪୮ —

ହାତେ ହାତେ ଥାଇ ଅମୂଲ୍ୟ ନିଧି,
ଚଳାଇ ଜାଣିଲେ ମିଳଇ ସିଦ୍ଧି ।

Priceless treasures in hands do lie,
Yours are they if hands you ply.

— ୪୯ —

କାମକୁ ଦେବତା ମଣି ଚଳରେ,
କାମ କର ଭାଗ୍ୟ ନିଜ ହାତରେ ।

Divinity in work doth lie,
Fortune is assured if hands you ply.

— ୫୦ —

କରିବା କରିବା ପାଣିରେ ଗାର,
କରି ଯା' କାମରେ ସେ କ୍ଷଣେ ପାର ।

Promises to work are marks on water,
If no work they soon disappear.



# ହାତ ଓ କଳ

# HAND AND MACHINE



ହାତ ସଜାଡ଼ଇ କଳକୁ କଳ ହେଲେ ଅକଳ,
କଳ ପାରିବ କି ସଜାଡ଼ି ହାତ ହେଲେ ଅଚଳ ?

Hand repairs machines when out of order,
Can machines repair a hand ? never oh' never.



ହାତ ଲାଗିଥିବ କାମରେ ଯେତେ,
ସହଜେ ଅସଜ ନ ହେବ କେବେ !

Hands to work if regulary set,
Out of order do never they get.

— ୩ —

ହାତ ଗଢୁଅଛି ଯେଉଁ କଳକୁ,
ସେ କାହୁଁ ବଳବ ହାତ ବଳକୁ ।
ସବୁ କଳ ଯାକ ମିଳବେ ଯେବେ,
ହାତ ଗୋଟା ଗଢି ନ ଦେବେ କେବେ ।

**Machines are handiworks of hand,**
**Against hand they never can stand.**

— ୪ —

କଳ ପାଇଁ ଯେବେ ଦେଳ ପଡ଼ିବ,
ଆମ ହାତ ଆମ କଳ ଗଢ଼ିବ ।

**Of machines when we stand in need,**
**Our hand will turn them out indeed.**

— ୫ —

ଚଳାଇ ଜାଣିଲେ ହାତର ବଳ,
ବଳେ ହୁଟି ଯିବେ ଯେତକ କଳ ।
ବିଦେଶୀ କଳର ମୋହରେ ବଣା,
ହେଲେ ରହିଯିବ ହାତ ଅଜଣା ।

Rightly if we hands do ply,
Machines with hands can never vie.
Machines brought from other lands,
Make us oblivious of hands.

— ୬ —

ଚମକ ନ ଯିବ କଳକୁ ଚହିଁ,
ହାତ ସଙ୍ଗେ କଳ ତୁଳା ନ ଯାଇ ।
A machine is without life sure,
With hand can it never compare.

— ୭ —

ହାତ ଗଢ଼େ କଳ,
ହାତ ନ ଲାଗିଲେ କଳ ଅଚଳ ।
ହାତ ଚଳନ୍ତୁ ଥିଲେ,
କାହୁଁ ବଳ ଯିବ ହାତକୁ କଳ ?
Hand makes machines,
Machines cannot move without hand.
If all hands move,
How could the machines stand.

— ୮ —

କଳ ପାଇଁ ଯେତେ ହେବା ବକାଳ,
ହାତକୁ କରିବା ତେତେ ଅକଳ ।
କଳ ଭଙ୍ଗ ଭକ୍ଷ ଶେଷକୁ ଫଳ,
ସବୁ ହାତ ଯାକ ହେବ ଅଚଳ ।
For machines do not get mad,
They produce results very very sad.
They paralyse hands it is sure,
And leave for the disease verily no cure.

— ୯ —

ପର କଳ ଧର ମାଡବା ଯେବେ,
ହାତକୁ ବଗାଡ଼ ରଖିବା ତେବେ ।

On machines of others if we depend,
We spoil the strength of our hand.

— ୧୦ —

ବଗାଡ଼ ବସିଲେ ଥରେ ହାତକୁ,
ଗଢ଼ି ନ ପାରିବା କଳ କାଳକୁ ।

If we spoil our hands ever,
We can make machines never.

— ୧୧ —

ଆମ କଳ ଆମ ବୋଲ ମାନିବ,
ଯେତେ ଯାହା ଲୋଡ଼ା ସବୁ ଗଢ଼ିବ ।

Our machine will obey our command,
Will supply in time all we demand.

— ୧୨ —

ଗଢ଼ିଲେ ପଦାର୍ଥ ହାତେ ଆଗରେ,
ବଢ଼ିବ ଗଢ଼ିବା ବଳ ବେଗରେ ।

Producing articles with hands first,
Production power will develop fast.

— ୧୩ —

ଆମ ହାତ ପଡ଼ିଗଲେ ଥରେ ବାଗରେ,
ନ ହେବ କଷଣ କଳ ଗଢ଼ିବା ଘରେ ।

Making of machines for our hand,
Will never be difficult in our land.

— ୧୪ —

କଳଯୁଗ ମାଡ଼ି ଆସୁଛି ଛାଡ଼ି ପାରିବା ନାହିଁ,
ହାତକୁ ସଜାଡ଼ କାମରେ, କଳ ଗଢ଼ିବା ପାଇଁ ।

Days of machines are coming apace
avoided they cannot be,
Prepare your hands by ceaseless work
the future machines to see.

— ୧୫ —

ହାତ ହେଲା ଆମ ପ୍ରଧାନ ବଳ,
ହାତ ରହି ଗଲେ ହେବା ଅଚଳ ।

Hand is our main power,
Hand inactive, we are nowhere.

# ଆପଣା ଘର

# HOME

---

ଘରଟି ସମ୍ଭାଳି ନ ପାରେ ଯେହୁ,
ତା'ଠାରୁ ଅଧିକ ଅଧମ ଓକେହୁ ?
To keep his home who is unable,
For what else is he capable ?

—୨—

ଆପଣା ଭାଇଙ୍କୁ ଯେ କରେ ପର,
କାହାକୁ ଘେନି ସେ ଗଢ଼ିବ ଘର ।
One to whom a brother is a stranger,
Can build a home never, oh never.

— ୩ —

ଘର ପସ୍ୱଣୀଙ୍କୁ ମଣିଷ କର,
ତେବେ ତ ବଢ଼ିବ ଆପଣା ଘର ।

Turn each member to a man,
Then sure build the home you can.

— ୪ —

ପର ଯେ ପର, ଯେ ଭାଇ ସେ ଭାଇ,
ଏ କଥାଟି କେବେ ଭୁଲିବ ନାହିଁ ।

A stranger is a stranger,
a brother is a brother,
This much one should forget never.

— ୫ —

ଘର ଯେବେ ପର ହାତକୁ ଯାଇ,
ପର ଗୋଇଠାକୁ ଛଳ କପାଇଁ ?

If the home is in the hands of others,
Why grudge kicks offered as favours ?

— ୬ —

ଘର ଚିହ୍ନ, ଚିହ୍ନ ଘର ଜନଙ୍କୁ,
ତେବେ ତ ଚିହ୍ନିବ ନିଜେ ନିଜକୁ ।

First know home and know your man,
Then know yourself you can.

— ୭ —

ତମ ଘରେ ତେମେ ହେଲେ ତମର,
ତେବେ ତ ବୁଝିବା ତେମେ ଆମର ।

After in your home you are yours,
We can then believe you are ours.

— ୮ —

ତମ ଘର ଯେବେ ନୋହେ ତମର,
ତେମେତ ଆପଣା ଘରକୁ ପର ।

If your home is your no longer,
What more are you than a mere stranger.

— ୯ —

ଆମ ଭାତ ଖାଇ ଉଡ଼ନ୍ତି କାଉ,
ଆମେ ତ ନ ପାଉଁ ମାଣ୍ଡିଆ ଜାଉ ।

Distant birds feed on our food and fly,
For want of food we look to the sky.

— ୧୦ —

ଖଙ୍କାଳ ପେଟରେ ଗୃହ୍ନୁଁ ବସିବା,
ପେଟ ଶୁକୁ ଶୁକୁ, ଅନ୍ତ ଧୁକୁ ଧୁକୁ ;
ଦାନ୍ତକୁ ନକୁଟି କେତେ ହସିବା ।

Empty stomach andcounterfeit glee,
Is sheer mockery as all can see.

— ୧୧ —

ଶୂନ୍ୟେ ଶୂନ୍ୟେ ଆମ ବାନା ଉଡ଼ୁଛି,
ଧୀରେ ଧୀରେ ଏଣେ ଡଙ୍ଗା ବୁଡ଼ୁଛି ।
Our flags fly high in the air,
While our boat is sinking we do not care.

— ୧୨ —

ଦେବା ଯେବେ ପର ହାତକୁ ଚୁଟୀ,
କ ପାଇଁ ସେ ଅବା ନ ଯିବେ ଲୁଟି ।
Is it not our own fault,
If others do wantonly assault ?

— ୧୩ —

ନିଜେ ନ ଚହ୍ନିବା ନିଜ ସମ୍ପଦ,
ପର ଲୁଣ୍ଠୁଥିବେ ଚାହିଁ ଆନନ୍ଦ ।
We do not know our own treasure,
When others loot we admire in pleasure.

— ୧୪ —

ଧନ ଲୋଭ ତିଳେ ନାହିଁ ଆମର,
ଆମ ଧନ ଯାକ ସମସ୍ତଙ୍କର ।
For wealth we have no care at all,
What we possess doth belong to all.

— ୧୫ —

ଭାଗ୍ୟବନ୍ତ ଥିଲେ ଆମ ମୌରସ,
ପର ପୋଷିବାରେ ଆମେ ସରସ ।

Calculating were our forefathers,
We are experts in feeding others.

— ୧୬ —

ବାନ୍ଧିବାର ଆଗେ ନିଜ ଘରକୁ,
ଲୋଡ଼ା ହେଲେ ପରେ ଖୋଜ ପରଙ୍କୁ ।

Build your home yourself first,
Seek no help from others till last.

— ୧୭ —

ଘର ଆଗ ପଛ ହିତକୁ ଭାବ
ପରଙ୍କ ହାତକୁ ନ ଦେବ ଚାବି ।

Look to thy interest present and future,
Hand over key to aliens never.

— ୧୮ —

ଥରେ ହୁଡ଼ିଗଲେ ଜାଣ ପଛକୁ
କୋଢ଼ ହେଉଥିବ କାଳ କାଳକୁ ।

Once a mistake if you commit,
All chances in life you omit.

— ୧୯ —

ଧନ ଦଉଲତ ସକଳ ଯାଉ
ଘର ଗୁମର୍ଟା ଗୁପ୍ତରେ ଥାଉ ।

All trecasures might go if not reserved,
Home secrets must by all means be
preservel.

— ୨୦ —

ଗୁମର ଫିଟିଲେ ଉମର ଭରୁ
ଜୀଇ ଥାଉଁ ଥାଉଁ ମରଣ ଘରୁ ।

A man after his secrets lo t,
Is surely to death's silence hushed.

— ୨୧ —

ନ ଥାଇ ଯହିଁରେ ନଜର ଜ୍ଞାନ,
ପଡ଼ୋଶୀଙ୍କ ଠାରୁ ଶିଖ ସେମାନ ।
ଶିଖ ଯେତେ ଲୋଡ଼ା ନିଜ ହିତକୁ,
ଗଳାଟି ନ ଛାଡ଼ ପର ହାତକୁ ।

Learn from neighbours what you can,
That will make you a perfect man.
Surrender yourself never to others,
That will make you a bird sans feathers.

— ୨୨ —

ପର ହାତେ ଦେଇ ଧନ ସରବ,
ଭାଇ ଗଢ଼ି ଯିବେ ଘର ବୁଡ଼ିବ ।

To others if you yield your trade,
A pauper soon you will be made.

— ୨୩ —

ଆପଣା ଭାଇଙ୍କୁ ଆଗେ ବନାଅ,
ପରଙ୍କ ମୁହଁକୁ କିଆଁ ଅନାଅ ।

Train you if your own brothers,
What need to look to others ?

— ୨୪ —

ଘର ପଡ଼ିଗଲେ ପର ହାତରେ,
ଗୋଡ଼ ଭାଙ୍ଗି ଛିଡ଼ା ହେବ ଦାଣ୍ଡରେ ।

If to others you give your all,
Paupriem to your lot will fall.

— ୨୫ —

ପର ଗଢ଼ି ଦେବେ ଆମର ଘର,
ଏ ବଚର ଭାରି ଭ୍ରମ ଆମର ।

Others will build home for us,
Such a belief is treacherous.

— ୧୨ —

ସବୁ ପରକାରେ ହେଲୁଣି ବୋଷୀ,
ନ ଜାଣି କାହାକୁ କେମନ୍ତେ ତୋଷୀ ।

Art of flattery being to us unknown,
We succeed surely in pleasing none.

— ୧୭ —

ଧନ ବୋହଯାଏ ସୁଅ ମୁହଁରେ,
ଆମେ ଚୁଣ୍ଡି ବାନ୍ଧୁ ଆମ ମୁହଁରେ ।

Money slips out from our pockets we know,
We keep mum we cannot stop its flow.

— ୧୮ —

ଡର ଡର ସର ଗଲୁଣି ଆସି,
ପାଲଟି ଗଲୁଣି ଘରେ ଉଦାସୀ ।

Unmanned have we been by fear,
Bringing ruin dangerously near.

— ୧୯ —

ଘର ଛାଡ଼ ସାର ପର ହାତରେ
ଭୁଛା ଘାର ହେଉଥିବ ପଛରେ ।

Do not leave your home to strangers,
For that's tho way to invite dangers.

— ୭୦ —

ଘର କଥା କେବେ ପର କାନକୁ,
ନ ଯାଉ ଜଗିବ କାଳ କାଳକୁ ।

Domestic secrets to be guarded for ever,
Let these not reach an alien's ear.

— ୭୧ —

ଘର ଯେବେ ଆମେ ମେଲା ରଖିବା,
ପର ପଶିବାକୁ କହାଁ ଦୋଷିବା ।

An open door will tempt a stranger,
To all and sundry open it never.

— ୭୨ —

ଆମ ଘର କଥା ଆମ୍ଭକୁ ଜଣା
ଆଉ ଯା ହାତରେ ପଇଲେ ବଣା ।

Domestic matters are our close preserve,
Outside intrusion doth check deserve.

# ସାଧାରଣ

# GENERAL

---

ସୁଚିନ୍ତାରେ ସୁଖ ମିଳଇ ଶାନ୍ତି,
ଦୁଶ୍ଚିନ୍ତାରେ ଦୁଃଖ, ଦୁର୍ଦ୍ଦଶା, କ୍ଲାନ୍ତି ।
Noble thoughts bring peace and pleasures,
Evil thoughts breed troubles and dangers.

— ୧ —

ସୁଚିନ୍ତା ପ୍ରଖର ହେଲେଟି ଜାଣ,
ହଟିଯିବ ହେଲେ ଦୁଶ୍ଚିନ୍ତା ଠାଣ ।
The more the noble thoughts do flourish,
The quicker evil thoughts will vanish.

— ୩ —

ଯେ ଜାତରେ ଜନ କର୍ତ୍ତବ୍ୟହୀନ,
ସେ ଜାତ ଦରିଦ୍ର ସେ ଜାତ ଦୀନ ।

Where the people fail in duty,
There the nation is merged in poverty.

— ୪ —

ମନ ଗୁଣେ ଦୁଃଖ ସୁଖ ପାଲଟି,
ମନ ଗୁଣେ ସୁଖ ଯାଏ ଓଲଟି ।

Mind can make misery a pleasure,
Mind can turn pleasures to danger.

— ୫ —

ମହତ ବାସନା ଫୁଟିବ ଫଳ,
କୋଟି ବାଧା ବନ୍ଧ ପଡ଼ିବ ଟଳ ।

Noble desires are bound to flourish,
All obstructions to air do vanish.

— ୬ —

ବାନ୍ଧି ରଖି ପାର ଯେବେ ମନକୁ,
କି ଆଉ ଅସାଧ୍ୟ କାହିଁ ତୁମ୍ଭଙ୍କୁ ?

If you can control your mind,
Nothing out of control you find.

— ୭ —

ଏକା ଆଳସ୍ୟକୁ ଯେ ପାରେ ଜିଣି,
ସାରା ଦୁନିଆକୁ ସେ ପାରେ କିଣି ।

To control idleness who is able,
To win the world is he capable.

— ୮ —

ପ୍ରଭୁଙ୍କ ବାସନା ଫୁଟି ଉଠିବ,
ଯେତେ ଯା କଳ୍ପନା ଫାଟି ପଡ଼ିବ ।

Desire of God must be fulfilled,
All other desires bound to yield

— ୯ —

ପ୍ରତି ମୁହୂର୍ତ୍ତରେ ମିଳଇ ଶିକ୍ଷା,
ଅବିବେକୀ ଧରି ନ ପାରୁଁ ଦୀକ୍ଷା ।

Every moment we are taught,
Ignorant we can do catch naught.

— ୧୦ —

ସୁଖ ଦୁଃଖ ଇଚ୍ଛା ମନ ବିକାର,
ମନ ଦମ୍ଭ କଲେ ସବୁ ଅସାର ।

Happiness and misery are mind's creation,
To a mind strong offer hurdles none.

— ୧୧ —

ଲୋଡ଼ା ମନୁଷ୍ୟର ପ୍ରଥମ ଶିକ୍ଷା,
ସତତ ପ୍ରଭୁଙ୍କ କଲ୍ୟାଣ ଭିକ୍ଷା ।

To pray to God for his favour,
Should be our first lessons ever.

— ୧୨ —

ଚିନ୍ତାକର ଚିନ୍ତା ବଳେ କେବଳ,
ଅବଶ୍ୟ ମିଳିବ ସୁଚିନ୍ତା ଫଳ ।

Think and think, over and over,
In life you will never falter.

— ୧୩ —

ସର୍ପକୁ ଯେ ପୋଷେ ଅଧାର ଦେଇ,
ନିଜ ମୃତ୍ୟୁପଥ ସୁଧାରେ ସେହି ।

He who rears a snake with food,
Provokes sure its venomous hood.

— ୧୪ —

ଆଗେ ଚିହ୍ନି ସାର ନିଜେ ନିଜକୁ,
ତା ପରେ ଚିହ୍ନାଇ ଦେବ ପରକୁ ।

First know yourself, who you are,
Then to be known to others aspire.

— ୧୫ —

ଦୁଃଶ୍ଚିନ୍ତା ଗୁଡ଼ିକ ଦୁଃଖ ଭଣ୍ଡାର,
ସୁଚିନ୍ତାରେ ସୁଖ ଶାନ୍ତି ଅପାର ।

Evil thoughts are stores of dangers,
Noble thoughts bring peace and pleasures.

— ୧୬ —

ନ ଜାଣି ପଣ୍ଡିତ ଯେତେ ବଢ଼ିବେ,
ଅଜଣା ବିପତ୍ତି ତେତେ ଗଢ଼ିବେ ।

More the ignorant grow in powers,
More they invite perils' showers.

— ୧୭ —

ନ ଜାଣିବା ଜନେ ଝାଣ କରନ୍ତି,
ଯହୁଁ ଜାଣିବା ଜନେ ଡରନ୍ତି ।

The fools rush in blindly there,
Where perils angels do fear.

— ୧୮ —

ସ୍ୱାଧୀନତା ମୂଲ୍ୟ ନ ବୁଝେ ଯେହୁ,
କାହୁଁ ସ୍ୱାଧୀନତା ଭୋଗିବ ସେହୁ ।

Freedom's sweets who doth not taste,
In thraldom doth he forever rest.

— ୧୯ —

ସ୍ୱାଧୀନତା ନାମେ ଛୁଚ୍ଛା କଳଙ୍କ,
ହେଲେଟି ପରଙ୍କ କରୁଣା ରଙ୍କ ।

Independence is a sure disgrace,
If you banker after others' grace.

— ୨୦ —

ଦୋଷ ଗୁଣ ଥାଇ ସବୁ କ୍ଷେତ୍ରରେ,
ଗୁଣୀ ବାଛନ୍ତି ନଏ ଗୁଣ ଯତ୍ନରେ ।

The good and the bad ever together go,
The wise their difference see and show.

— ୨୧ —

ଅଜ୍ଞଙ୍କ ହାତରେ ବିଜ୍ଞଙ୍କ ଚୁଟି,
କେ କାହୁଁ ବାଛୁଡ କେତେକ ଛୁଟି ।

Where the iguorant controle the wise,
There run amok the unwise.

— ୨୨ —

ଅଭିଜ୍ଞତା ମୂଲ୍ୟ ଗଲାଣି ଉଠି,
ଅନଭିଜ୍ଞ ଜନେ ଉଠନ୍ତି ଫୁଟି ।

Experience is now of value bereft,
Inexperience rules right and left.

— ୧୩ —

ଆଜି ଯେ ଅଭିଜ୍ଞ ପଶୁରେ ଗଣ୍ୟ,
ଅନଭିଜ୍ଞଙ୍କର ପ୍ରଭାବ ଧନ୍ୟ ।

The experienced today is crushed as a fool,
Powers thrust upon the inexperienced to rule.

— ୧୪ —

କାମ ବଗାଡ଼ିବା ଅଜ୍ଞଙ୍କ କାମ,
ଯେତେ ବଗାଡ଼ିବେ ଅଧିକ ନାମ ।

By spoiling the work the ignoramuses
earn name,
The more they spoil it adds to their fame.

— ୧୫ —

ବିଜ୍ଞଜନ ହସ୍ତେ ମରଣ ଶ୍ରେୟ,
ଅଜ୍ଞ ଜନଙ୍କର କଲ୍ୟାଣ ହେୟ ।

Prefer death at the hands of the wise,
Shelter under the fools despise.

— ୧୬ —

ବିଜ୍ଞ ଜନଙ୍କର ଅଜ୍ଞଙ୍କୁ ଡର,
ଅଜ୍ଞତା ଅନଳ ବଡ଼ ପ୍ରଖର ।

The wise do fear the ignorant first,
Fire of ignorance burns very fast.

— ୨୭ —

ତୋର ଅନଭିଜ୍ଞ ଜନ ହାତରେ,
ବିପତ୍ତି ଆଶଙ୍କା ପ୍ରତି କ୍ଷଣରେ ।

Where fools have the upper hand,
Peril sure doth beset the land.

— ୨୮ —

ଜନ ହିତ ପାଇଁ ଚିନ୍ତା ଯାହାର,
ଧନ ଲୋଭ ରହି ନ ପାରେ ତାର ।

One who thinks of people's welfare
Free of greed is he entire.

— ୨୯ —

ମନୁଷ୍ୟତା ନାହିଁ ଧନ ବଳରେ,
ମନୁଷ୍ୟତା ଗଢ଼ ମନ ଦମ୍ଭରେ ।

Money can never make a man,
Strength of mind alone can.

— ୩୦ —

ଅନଭିଜ୍ଞ ଜନ ପରିଚାଳନା,
ମୂଳ ତାଙ୍କ ଡାଳ କରିବେ ବଣା ।

Control left to an inefficient master,
Is bound to beget dire disaster.

— ୩୫ —

ଅଭିଜ୍ଞତା ମୂଲ୍ୟ ନାହିଁ ଯେଠାରେ,
ବିପଦ ସଙ୍କୁଳ ପ୍ରାଣ ସେଠାରେ ।
Where experience is valued not,
Life is there with danger fraught.

— ୩୬ —

ଅନଭିଜ୍ଞତାର ବଢ଼ୁଛି ଦାଉ,
କେ ଅବା ସମାଳି ପାରିବ କାହୁଁ ?
Control of ignorance over experience,
How to prevent its evil consequence. ?

— ୩୭ —

ଅଭିଜ୍ଞତାକୁ ଯେ ଅବଜ୍ଞା କରେ,
ବଢ଼ ସେଠୁ ଅବିବେକ ପଣରେ ।
Where experience is respected not,
Foolishness there runs rampant.

— ୩୮ —

ଅନଭିଜ୍ଞତାର ପ୍ରଭାବ ଯହିଁ,
ଅଭିଜ୍ଞତା ସ୍ଥାନ ନ ଥାଇ ତହିଁ ।
Where ignorance doth get upper hand,
Experience can there never stand.

— ୩୫ —

କାମଟି ଭାଙ୍ଗିବା ଅତି ସରଳ,
ଗଢ଼ିବା ସେତକ ବଡ଼ ଅକଳ ।

To break only a moment requires,
To build needs years and years.

— ୩୬ —

ବାଟ ଖଞ୍ଜୁଥିବ ଦୁର୍ନୀତି ପାଇଁ,
କଣ୍ଟା ଘାରି ହେବ ଦୁର୍ନୀତି ଗୃହୁଁ ।

If corruption's way you pave,
Regret not consequence as grave.

— ୩୭ —

ଦୁର୍ନୀତିରେ ଯେତେ ଯେ ପାର ଚଢ଼ି,
ହେଜ ରଖ ହେଲେ ପଡ଼ିବ ଗଡ଼ି ।

By dishonesty yo may rise to the top,
Never forget in a trice you may drop.

— ୩୮ —

ଦୁର୍ନୀତି ବଳରେ କେ କେବେ କାହୁଁ,
ବଡ଼ ହୋଇ ରହି ପାରିଛ ନାହିଁ ।

No one by sheer dishonesty,
Can ever maintain prosperity.

— ୩୯ —

ଆହାର ମଧୁର ଭୋକ ବେଳରେ,
ସତ୍ୟ ଏ କଥାଟି ସବୁ କାଳରେ ।

Food is sweet when there is hunger,
Is a truth unshakable ever.

— ୪୦ —

ଭୋକ ଆହାରକୁ ମଧୁର କରେ,
ଭୋକ ବିନା ପରଶିଲେ ରୋଗରେ ।

Appetite does make food sweet,
Food begets disease if no appetite.

— ୪୧ —

ନ ଜାଣିବା ଜନେ ଏକା ମଣନ୍ତି,
ଯେତେ ଯାହା ଯହିଁ ସବୁ ଜାଣନ୍ତି ।

The garb of the wise they put on,
Really who know nothing anon.

— ୪୨ —

ଯେ ଯେତେ ଜାଣଇ ସେ ଏକା ଜାଣେ,
ଆଉ କେତେ ଅଛି ବାକି ନ ଜାଣେ ।

The wise knows how much more,
Knowledge he has yet to store.

— ୪୩ —

ଯେ ଜନ ଯାଣଇ ଯେତେ,
ସେ ଜାଣେ ନ ଜାଣେ କେତେ ।
ନଜାଣିବା ଜନ ମଣେ ସବୁ ସେ ଜାଣେ ।

The more one knows the humbler he becomes,
Vanity never he harbours.

— ୪୪ —

ଯେଉଁ କାମ ଯାକ ଯାଙ୍କୁ ଅଜଣା,
କ୍ଷମତା ପାଇଲେ କରନ୍ତି ବଣା ।

Power-blind one mars that thing,
About which he knows nothing.

— ୪୫ —

ନ ଜାଣିବା ଜନ କ୍ଷମତା ପାଇ,
କାମରେ ପଶିବେ କାମ ବୁଡ଼ାଇ ।

An ignoramus in power,
Spoils all things to be sure.

— ୪୬ —

ଜେଣୁ ଯେତେବ ଜନ ସେବା କରିବ,
ଆଗେ ଆପଣାକୁ ହୀନ ମଣିବ ।

To know to serve people the best,
Is to become the humblest.

— ୪୭ —

ଜନ ମନ ଆଗେ ଚହ୍ନି ନ ସାରି,
ଆପଣା ମନକୁ ନ କର ଭାରି ।

Know the popular mind first,
Flatter not thyself to be best.

— ୪୮ —

ଚହ୍ନି ନ ପାରିଲେ ଜନ ମନକୁ,
କି କାମ କରିବ କେଉଁ ଫଳକୁ ।

Popular mind first you must know,
Without it all empty show.

— ୪୯ —

ଯାହା ଯେ କରିବ ଯାହାଙ୍କ ପାଇଁ,
ତାଙ୍କୁ ଆଗେ ଚହ୍ନ ମନ ମିଳାଇ ।

What you do, for whom you do,
Know them first, who is who.

— ୫୦ —

ରାମରାଜ୍ୟ ରହିଲାଣି ନାମରେ,
କାମ ରାଜ୍ୟ ଚଳି ପକା କାମରେ ।

Ramarajya is an expression mere,
Kamarajya is work now and here.

— ୫୧ —

ଲାଗିବ କାମରେ ଯେବେ ସକଳେ,
ଫେରିଇ ଆସିବ ସୌଭାଗ୍ୟ ବଳେ ।

Devoted be to work entire,
Fortune will be thime be sure.

— ୫୨ —

ଦୁଃଖ ଦୁର୍ଦ୍ଦଶାକୁ ତଡ଼ିବା ପାଇଁ,
କାମ ଛଡ଼ା ଅନ୍ୟ ଉପାୟ ନାହିଁ ।

To stamp out miseries from the land.
Only way is to work with hand.

— ୫୩ —

ବାନର ହସ୍ତରେ ରତ୍ନ ଭଣ୍ଡାର,
ଗଧ ଯୋଗାଇବ ବୁଦ୍ଧି ବଖ୍ରର ।
ନିଜ କପାଳରେ କର ନ ମାର,
କାହାଗେ ଗାଇବ କେଉଁ ଗୁହାରି ।

If treasure store is trusted to a monkey,
And measures are prescribed by a donkey.
One has only to curse his lot,
Whom to blame for one's own fault.

— ୫୪ —

ତଳେ ଅପବିତ୍ର ଭାବ ଘୁଞ୍ଚରେ,
ରହି ନ ପାରିବ କାମ ଭିଡ଼ରେ ।
Mind engaged in work for ever,
Evil thoughts can disturb never.

— ୫୫ —

କବାଟ କୋଣରେ ଥୋଇଲେ ବାଡ଼ି,
ଯିବ କି ବିରାଡ଼ି ଶିଙ୍ଘୁଆ ଛାଡ଼ି ?
A passive stick kept carefully concealed,
Doth scarce in scaring a cat succeed.

— ୫୬ —

ଯେ ଯେତେ ବଢ଼ିବ ବଢ଼ ଆଗକୁ,
ତୁଚ୍ଛ ନ ମଣିବ କେବେ ପଛକୁ ।
Proceed on and on as much as you can,
Don't treat the past as useless and vain.

— ୫୭ —

ଶୋଇବ ଚଞ୍ଚଳ ଉଠିବ ଆଗ,
ସ୍ୱାସ୍ଥ୍ୟରେ, ଧନରେ, ଜ୍ଞାନରେ ଭାଗ ।
Early to bed and early to rise,
Doth make healthy, wealthy and wise.

— ୪୮ —

ଯାହା ହେଲା ନାହିଁ ଭାବ କପାଇଁ,
ଯାହା ହୋଇ ନାହିଁ ଲାଗ ତା ପାଇଁ ।

Mourn not for what could not be done,
Think of future and future alone.

— ୪୯ —

ଘୃଅକୁ ଘୋଡ଼ାଅ ଯେତେ ସନ୍ଧିରେ,
ଫୁଟିବ ତା ଗନ୍ଧ କେଉଁ କନ୍ଧିରେ ।

Conceal the evil under any cover,
Evil is evil it will leak out sure.

— ୫୦ —

ଭ୍ରମ କରିବାକୁ ଆଗେ ଡରିବ,
ଭ୍ରମ ସଜାଡ଼ିବା ଭିଡ଼ ପଡ଼ିବ ।

Try to avoid a mistake to make,
Lots of trouble to correct will take

— ୫୧ —

ନ ବୁଝେ ଯେ ଜନ ଚରିତ୍ର ମୂଲ୍ୟ,
ହୀନ ପଶୁ ସଙ୍ଗେ ନୋହେ ସେ ତୁଲ୍ୟ ।

One who knoweth not the value of character,
Worse is he than the lowliest creature.

— ୬୨ —

ଜାତର ଗୌରବ ଆମ ହାତରେ,
ହେଜ ରଖିଥିବ ସଦା ଚିତ୍ତରେ ।

Do not for a moment forget
Nation's glory with us doth rest.

— ୬୩ —

ଯେତେ ଯା ସମ୍ପଦ ସୌଭାଗ୍ୟ ଥାଉ,
ସରଳତା ସଙ୍ଗେ ତୁଳା ନ ଯାଉ ।

Simplicity in thoughts and in deed,
Surpasseth all treasures indeed.

— ୬୪ —

ଜଟିଳ ସମସ୍ୟା ମୀମାଂସା ପାଇଁ,
କୁଟିଳ ଭାଷଣ ଲୋଡ଼ା ନ ଥାଇ ।

Problems are problems whether big or small
Never are they solved by talks however tall.

— ୬୫ —

ସ୍ୱାର୍ଥକୁ ଲୁଚାଅ ଯେତେ ଗୋପନେ,
ସେ ଲୁଚି ରହି ନ ପାରିବ କ୍ଷଣେ ।

To conceal self interest under any cover,
One can succeed oh never and never.

— ୬୬ —

ଉଗ୍ରତା ପତନ ବ୍ୟଗ୍ର ଗତିରେ,
ନମ୍ରତାର ସ୍ଥିତ ସ୍ନେହ ପ୍ରୀତିରେ ।
Hasty pride ends in speedy fall,
Humbleness earns the love of all.

— ୬୭ —

ବୃହତ ଶିଳ୍ପରୁ ବୃଦ୍ଧି ଧନୀ ଧନାଗାର,
କୁଟୀର ଶିଳ୍ପରୁ ଭୋକୀ ଶୋଷୀଙ୍କ ଆହାର ।
Big industries help the rich to be richer,
Cottage industries do cure famine and hunger.

---

# ଶିଶୁ

# CHILD

---

ଶିଶୁଯାକ ଆମ ଦେଶ ସଙ୍ଖାଳ,
ଗଢ଼ ତାଙ୍କୁ ଚଞ୍ଚଳଗକୁ ଭାଳ ।
Children are our fut .re treasures,
To mould them spare no possible measures.

— ୨ —

ଜାତି ଭବିଷ୍ୟତ ଦେଶ ଭାଗ୍ୟକୁ,
ସୁନ୍ଦର ସଜାଡ଼ ଶିଶୁ ଗଣଙ୍କୁ ।
Look to future of country and nation,
Equip children with full attention.

— ୩ —

ଆଜିପିଲା କାଲି ଜାତିର ଦମ୍ଭ,
ସେହି ହେବେ ବଡ଼ ଦେଶର ସ୍ତମ୍ଭ ।

Children of to-day shall have to stand,
Pillars of tomorrow for our land.

— ୪ —

ଜାତି ଭବିଷ୍ୟତ ଶିଶୁଙ୍କ କରେ,
ହେଜ ରଖିଥିବ ସଦା ଚିତ୍ତରେ ।

In hands of children the nation's future,
Rests one should forget never.

— ୫ —

ପିଲାଙ୍କୁ ଗଢ଼ି ନ ପାରିବେ ଯେହୁ,
ଜାତିଦ୍ରୋହୀ ଚର ଦଳକୁ ସେହୁ ।

Those who fail their children to train,
Are traitors to country worthless men.

— ୬ —

ପିଲାଙ୍କୁ ମନୁଷ୍ୟ ଗଢ଼ିବା ପାଇଁ,
ନିଜ ପିତାମାତା ପ୍ରଥମେ ଦାୟୀ ।

To mould children as far as possible,
Mother and father are first responsible.

— ୭ —

ଶିଶୁଙ୍କ ସ୍ୱଭାବ ଅତି ସରଳ,
ଗଢ଼ିବାରେ ଦୃଷ୍ଟି ଲୋଡ଼ା କେବଳ ।

Receptive is child's mind tender,
Only care has one ever to render.

— ୮ —

ପିଲାଙ୍କ ମନକୁ ଜଗି ଜାଣିବ,
ତେବେ ତ ବାଗକୁ ତାଙ୍କୁ ଆଣିବ ।

The habits of children if you read,
To guide them easily you will succeed.

— ୯ —

ପିଲାଙ୍କ ଚଞ୍ଚଳ ମନ ପାଠରେ,
ଲାଗିବ ଯୋଡ଼ିଲେ କାମ ସାଙ୍ଗରେ ।

Manual jobs with lessons mixed,
Gets children's mind there to fixed.

— ୧୦ —

କାମ ବାଛି ଦେଲେ ଖେଳ ଭଳିଆ,
ପିଲାଙ୍କ ମନକୁ ହେବ ବଢ଼ିଆ ।

Give work to children like their play,
That would make them enough gay.

— ୧୧ —

ପିଲାଙ୍କୁ ଶିଖାଅ ପାଠ ଆଗରୁ,
ହାତେ ହାତେ କାମ କର ଆଦ୍ୟରୁ ।

Manual work should lessons precede,
That would make child in life succeed.

— ୧୨ —

କାମ ବାଛି ନଅ ପିଲାଙ୍କ ପାଇଁ,
ପିଲାଏ ଧାଇଁବେ କାମକୁ ରୁହଁ ।

Select labour fitting children's mind,
In lesson added pleasure to find.

— ୧୩ —

ପିଲାଙ୍କ ଖେଳରୁ କାମ ଛାଣିବ,
ତେବେ ତ ପିଲାଙ୍କ ମନ ଠାଣିବ ।

Work when added to play,
Makes children active and gay,

— ୧୪ —

ପିଲାଙ୍କ ଖେଳରୁ କାମ ଠାଣିବ,
ସେ କାମ ପିଲାଙ୍କ ମନ କିଣିବ ।

Work when to play is added.
Makes children never jaded.

—୧୫—

ଖେଳ କାଢ଼ ବଡ଼ କାମ ଭିତରୁ,
ବଢ଼ିବ ପିଲାଙ୍କ ଜ୍ଞାନ ଖେଳରୁ ।

With play do work intertwine,
That'll give children interest fine.

—୧୬—

କାମ ଯେବେ ହେବ କଉତୁକିଆ,
ପିଲା ଲାଗି ଯିବେ ଖେଳ ଭଳିଆ ।

To work if mirth is mixed,
Child mind can with ease get fixed.

—୧୭—

ପାଠ ସଙ୍ଗେ କାମ, କାମ ସଙ୍ଗେ ପାଠ,
ଅଖ କର ଦେଲେ ପିଲା ଦନରୁ ।
ସୁଖେ ସୁଖେ ସଂଗ୍ର ଜୀବନ କଟିବ,
ଦୁଃଖ କାହିଁ ହଟି ଯିବ ଦୂରରୁ ।

From early years join work with play,
That would make future happy and gay.

—୧୮—

ପିଲାଙ୍କ ଖେଳରେ କାମ ଖଞ୍ଜିବ,
କାମରେ ପିଲାଙ୍କ ମନ ରଞ୍ଜିବ ।

Add works in child's play,
In work he would become gay.

—୧୯—

ଖେଳାଇ ଖେଳାଇ ଅତି ସଙ୍ଗରେ,
ପିଲାଙ୍କୁ ଲଗାଇ ଧୀର କାମରେ ।
Initiate children to work through play,
That will make them blithe and gay.

—୨୦—

ପିଲାଙ୍କୁ ମତାଅ ଯେଉଁ ବାଗରେ,
ପିଲା ମାତି ଯିବେ ଅତି ବେଗରେ
Canalise child-energy in whatever line,
It will go on waxing and will never decline.

—୨୧—

ପିଲାଏ ମାତିଲେ ଧୂଆଁ ବାଣରେ,
ଜାତି ବୁଡ଼ି ଯିବ ଘୂଅ ଠାଣିରେ ।
Woe will sure befall a nation,
If young ones fall victims to vision.

—୨୨—

କାମରେ ଖଟାଇ ଶିଖା ପିଲାଙ୍କୁ,
ଚଢ଼ୁଛି ଉଠିବ ଦେଶ ପଦାକୁ ।
Harness the children to work hard work,
Country will then rise to desired mark.

---

